# ଅମର ଶହୀଦ ଗ୍ରନ୍ଥମାଳା






ଗୁରୁଜୀ ବୁକ୍ ଷ୍ଟଲ

ଝାଞ୍ଜିରୀମଙ୍ଗଳା, କଟକ-୯

# ଅମର ଶହୀଦ ଗ୍ରନ୍ଥମାଳା —୫

ଲେଖକ :

**କୃତ୍ତିବାସ ନାୟକ,** ଏମ୍. ଏ. (.ଗବେଷକ )

ପ୍ରକାଶକ :

**ଶ୍ରୀନିବାସ ଗୁରୁ**

**ଗୁରୁଜୀ ବୁକ୍‌ଷ୍ଟଲ**

କଟକ-୯

ମୁଦ୍ରଣ :

**ଗୁରୁଜୀ ପ୍ରିଣ୍ଟର୍ସ**

ଝାଞ୍ଜିରିମଙ୍ଗଳା, କଟକ-୯

ପ୍ରଥମ ସଂସ୍କରଣ :

**୧୯୮୭**

ମୂଲ୍ୟ : **ଟ ୪–୦୦ ମାତ୍ର**

# AMARA SAHEED GRANTHA MALA-5

By : **Kruttibas Nayak,** M. A.

Publisher : **Gurujee Book Stall**

Cuttack-9

Printer :**Gurujee Printers**

Cuttack-9

1st Edition : **1987**

Price Rs : **4-00**

# ଉତ୍ସର୍ଗ

ସ୍ୱାଧୀନତାର ଆନ୍ଦୋଳନ ରୂପକ ଜାତୀୟ ମହାଯୁଦ୍ଧରେ ଆତ୍ମବଳୀ ଦେଇଥିବା ଅଗଣିତ ମହାନ୍ ଶହୀଦମାନଙ୍କ ପବିତ୍ର ସ୍ମୃତି ଉଦ୍ଦେଶ୍ୟରେ······



# ସୂଚୀ





# ନଅଟି ରକ୍ତପଦ୍ମ



ପାଟଣାର ଉଦାସ ସନ୍ଧ୍ୟା । ସେ ଦିନ ଥିଲା ଅଗଷ୍ଟ ମାସ ଏଗାର ତାରିଖ । ଭାରତ ଛାଡ଼ ଆନ୍ଦୋଳନ ସମୟର କଥା । ପାଟଣାର ରାଜରାସ୍ତା ଉପରେ ନଅଜଣ ବୀର ଶହୀଦଙ୍କ ଶବ ଶୋଭାଯାତ୍ରା ଚାଲିଥାଏ । ଲକ୍ଷ ଲକ୍ଷ ଜନତାଙ୍କର କରୁଣ ଚାହାଣି । ସତେ ଯେମିତି ତାଙ୍କଠାରୁ ସବୁ କିଛି କିଏ ଛଡ଼େଇ ନେଇଛି ।

ମଝିରେ ମଝିରେ ବନ୍ଦେ ମାତରମ୍ ଧ୍ୱନିରେ ଉଦାସ ହୃଦୟତଳେ ଚମକ ଆସି ଯାଉଥାଏ । କିଛି ସମୟ ପରେ ଚିତା ସଜଡ଼ା ଗଲା । ନଅଟି ରକ୍ତପଦ୍ମ ଶରୀର ଅଗ୍ନି ଶିଖାରେ କୁଆଡ଼େ ମିଶିଗଲା । କିନ୍ତୁ ସେ ସ୍ମୃତି ଆଜିଯାଏ—ପାଟଣା

ସଚିବାଳୟ ସମ୍ମୁଖରେ ଜୀବନ୍ତ ଭାବେ ଦଣ୍ଡାୟମାନ ହୋଇ ରହିଛି । ସେ ବିରାଟ ସୁରମ୍ୟ ସ୍ମୃତି ସ୍ତମ୍ଭରେ ନଅଜଣ ବୀର ଶହୀଦ ଜାତୀୟ ପତାକାକୁ ଟେକି ରଖିଛନ୍ତି । ତାହା ସନ୍ଦର୍ଶନ ପାଇଁ ଆମକୁ ସ୍ୱାଧୀନତା ସଂଗ୍ରାମକୁ ସ୍ମରଣ କରାଇ ଦେଉଛି ।



ମହାତ୍ମା ଗାନ୍ଧୀଙ୍କ 'କର ବା ମର' ଡାକରାରେ କୋଟି କୋଟି ଭାରତୀୟ କେଉଁ ଏକ ମନ୍ତ୍ର ବଳରେ ନାଚି ଉଠିଲେ । ଆନ୍ଦୋଳନର ଅଗ୍ନିଶିଖା ସମଗ୍ର ଦେଶକୁ ଗ୍ରାସ କଲା । ମୁହୂର୍ତ୍ତକ ମଧ୍ୟରେ କେଉଁ କୋଣରେ କ'ଣ ଘଟିଗଲା, କେହି ତାର ସଠିକ୍ ହିସାବ ରଖିପାରିଲେ ନାହିଁ । ଗାନ୍ଧିଜୀ ଏହି ଆଦେଶ ଦେଇଥିବାରୁ ତାଙ୍କୁ ଇଂରେଜ ସରକାର ୟେରବାଡ଼ା ଜେଲ୍‌ରେ ବନ୍ଦୀ କରି ରଖିଥାନ୍ତି । ନଜର

ପୂଜ୍ୟ ନେତାଙ୍କୁ ମୁକ୍ତ କରିବା ପାଇଁ ଏବଂ ତାଙ୍କର ସ୍ୱପ୍ନକୁ ସଫଳ କରିବା ପାଇଁ ଚାରିଆଡ଼େ ସଭାସମିତି ଚାଲିଥାଏ ।



ସମଗ୍ର ବିହାରକୁ ସ୍ୱାଧୀନତାର ମହାମନ୍ତ୍ର ଶୁଣାଇବା ପାଇଁ ସେଦିନ ପାଟଣା ସହରରେ ନାଗରିକମାନଙ୍କର ଛୋଟ ଛୋଟ ସଙ୍ଗଠନ ଏକ ବିରାଟ ଶୋଭାଯାତ୍ରାର ରୂପ ଧାରଣ କରି ପାଟଣା ସଚିବାଳୟ ଆଡ଼କୁ ଦୁର୍ବାର ସ୍ରୋତ ଭଳି ଆଗେଇ ଚାଲିଲା ।

କଲେକ୍ଟର ଆର୍ଥର ଝରକାର ପରଦା ଟେକି ତଳକୁ ଅନାଇଲେ । ଯେତେ ଦୂରକୁ ଅନାଇଲେ ବି ତଳେ କେବଳ ମଣିଷ ମୁଣ୍ଡର ଦୃଶ୍ୟ । ସେହି ମୁଣ୍ଡମାଳ ମଧ୍ୟରେ ଅସଂଖ୍ୟ ତ୍ରିରଙ୍ଗ ପତାକା ଦେଖାଯାଉଥାଏ । ଜନସମୁଦ୍ରର ଜୟଧ୍ୱନି 'ଇନ୍‌କିଲାବ୍ ଜିନ୍ଦାବାଦ', ମହାତ୍ମା ଗାନ୍ଧିଙ୍କୁ ଜୟ', 'ଇଂରେଜ କୁତ୍ତା ଭାରତ ଛାଡ଼' ଆର୍ଥରଙ୍କ କାନକୁ ଯେପରି ବଧିର କରିଦେଲା । ସେ ତାଙ୍କ ପଛରେ ଛିଡ଼ା ହୋଇଥିବା ଗୁର୍ଖା ସୈନ୍ୟବାହିନୀ ଆଡ଼କୁ ଅନାଇଲେ । ସେମାନେ କଲେକ୍ଟରଙ୍କ ଆଦେଶକୁ ଅପେକ୍ଷା କରିଥିଲେ ।

"ତୁମେମାନେ ତଳକୁ ଚାଲ । ମୁଁ ଯାଉଛି ।" ଆର୍ଥର ଆଦେଶ ଦେଲେ ।



'ଆର୍ଥର ତଳକୁ ଆସିଲେ । ସେକ୍ରେଟେରିଏଟ୍ ଦ୍ୱାରରେ ଥିବା ସଶସ୍ତ୍ର ପୋଲିସ ଜଗୁଆଳି କଲେକ୍ଟରଙ୍କୁ ଦେଖି ବାଟ ଛାଡ଼ିଦେଲେ । ଆର୍ଥର ପ୍ରବେଶପଥରେ ଆସି ଛିଡ଼ା ହେଲେ । ସେଠାରୁ ପୂର୍ବ ଶୋଭାଯାତ୍ରା ଦେଖା-ଯାଉଥିଲା । ସେକ୍ରେଟାରିଏଟ୍ ଆଗରେ ଥିବା ଖାଲି ପଡ଼ିଆ ଜନସମାଗମରେ ଭର୍ତ୍ତି ହୋଇ ଯାଇଥିଲା । ଶୋଭାଯାତ୍ରାର

ସଭା ଆଗରେ ଥିଲେ ସ୍କୁଲ ଓ କଲେଜର ଛାତ୍ରମାନେ । କିନ୍ତୁ ସେହି ବାଲସୁଲଭ ଚେହେରା ଯେପରି ଏକ ଅମ୍ଳାନ ଆଭାରେ ଦୀପ୍ତିମାନ ହୋଇ ଉଠୁଥିଲା ।

କଲେକ୍ଟରଙ୍କ ସେକ୍ରେଟାରିଏଟ୍‌ର ବିଶାଳ ଲୌହ ଦ୍ୱାରରେ ଛିଡ଼ା ହୋଇଥିବାର ଦେଖି ଶୋଭାଯାତ୍ରାର ଜୟଧ୍ୱନି ବନ୍ଦ ହୋଇଗଲା । ଭିଡ଼ ମଧ୍ୟ ମନ୍ଥର ହୋଇଗଲା । କିନ୍ତୁ ହଠାତ୍ ଯେପରି ଭିଡ଼ ମଧ୍ୟରୁ କିଏ ଜଣେ ପାଟି କରି କହିଲା—"ୟୁନିୟନ ଜ୍ୟାକ୍..."

ସଙ୍ଗେ ସଙ୍ଗେ ସହସ୍ର କଣ୍ଠରୁ ଶବ୍ଦ ବାହାରିଲା "...ନିଆଁ ଲଗାଇ ଦିଅ । ନିଆଁ ଲଗାଇ ଦିଅ ।"

ଆର୍ଥରଙ୍କ ନେତୃତ୍ୱରେ ଛିଡ଼ା ହୋଇଥିବା ସୈନିକ-ବାହିନୀ ସଙ୍ଗୀନଯୁକ୍ତ ରାଇଫଲ୍ ଉପରେ ହାତ ଦୃଢ଼ କଲେ ।

ଭିଡ଼ ଭିତରେ ପ୍ରଥମେ ପାଟି କରିଥିଲା ଚଉଦବର୍ଷ ବୟସର ଜଣେ କିଶୋର ଛାତ୍ର । ନାଆଁ ବୀରେନ୍ଦ୍ର ସିହ୍ନା । ସେ ଭିଡ଼ ଠେଲି ଆଗକୁ ଯିବାକୁ ଚେଷ୍ଟା କରୁଛି, ପଛରୁ କିଏ ଜଣେ ତାର ଜାମା ଟାଣିଧରି ତାକୁ ଅଟକାଇଲେ । ବୀରେନ୍ଦ୍ର ଘୁରି ଅନାଇଲା । ଦେଖିଲା, ଔଷଧ ଦୋକାନ କରିଥିବା ତାଙ୍କ ପଡ଼ୋଶୀ ଭଦ୍ରଲୋକ—ଆଶୁତୋଷ ଭଟ୍ଟାଚାର୍ଯ୍ୟ ।

ଭଟ୍ଟାଚାର୍ଯ୍ୟ କହିଲେ—"ବୀରେନ୍ ! ଆଗକୁ ଯାଆନା । ଦେଖୁନାହଁ, ତୋ ସ୍ଲୋଗାନ ଶୁଣି ସୈନ୍ୟମାନେ କିପରି ଗୁଳି ଚଳାଇବା ପାଇଁ ପ୍ରସ୍ତୁତ ହେଲେଣି ।"

ବୀରେନ୍ଦ୍ର ଉତ୍ତର ଦେଲା—"ଆଶୁଦା, ଯଦି ଭାରତକୁ ସ୍ୱାଧୀନ କରିବାକୁ ହେବ, ତାହେଲେ ତ ଆମକୁ ଗୁଳି ଖାଇବାକୁ ପଡ଼ିବ ।"

ଭଟ୍ଟାଚାର୍ଯ୍ୟବାବୁ ହସିଲେ । କହିଲେ—"ସତ କଥା । କିନ୍ତୁ ମରିବା ପାଇଁ ଯେତେବେଳେ ତୋଠାରୁ ବଡ଼ମାନ ପ୍ରସ୍ତୁତ ଅଛନ୍ତି, ତୁ କାହିଁକି ନିଜ ଜୀବନକୁ ବାଜି ଲଗାଇବୁ ? ଘରେ ତୋ ମାଆ ତୋତେ ଖୋଜୁଥିବେ··· ଯାଆ, ଫେରିଯା ।"

"କିନ୍ତୁ ଏ ରାଇଫଲ୍ ପଛରେ ଥିବା ଆଉ ଜଣେ ମାଆ ମୋତେ ଯେ ଡାକୁଛନ୍ତି"—ବୀରେନ୍ଦ୍ର ଉତ୍ତର ଦେଲା ଏବଂ ଭିଡ଼ ଠେଲି ଆଗକୁ ଚାଲିଗଲା । ଭଟ୍ଟାଚାର୍ଯ୍ୟବାବୁ ତାକୁ ଅଟକାଇବାକୁ ଚେଷ୍ଟା କଲେ କିନ୍ତୁ ଭିଡ଼ର ପ୍ରାଚୀର ତାଙ୍କୁ ବାଧାଦେଲା ।

ଭିଡ଼ ଯେପରି କ୍ରୋଧରେ ଟଳମଳ କରୁଥିଲା । କାରଣ ଅଳ୍ପ ସମୟ ପୂର୍ବରୁ କିଏ ଜଣେ ଇଂରେଜ ଅଫିସର ଭାରତୀୟମାନଙ୍କୁ 'ବ୍ଲଡ଼ି ସ୍ୱାଇନ୍' କହି ଗାଳି ଦେଇଥିବାରୁ ଲୋକଙ୍କ ଧୈର୍ଯ୍ୟର ବନ୍ଧ ଭାଙ୍ଗିଯାଇଥିଲା । ଶୋଭାଯାତ୍ରାର ପୃଷ୍ଠଭାଗ ଏ ପର୍ଯ୍ୟନ୍ତ ସେକ୍ରେଟାରୀଏଟ୍ ସାମନା ପଡ଼ିଆରେ ପହଞ୍ଚି ନ ଥିଲା । କିନ୍ତୁ ଦୂରରୁ ସେମାନଙ୍କର ଜୟଧ୍ୱନି ଧରିତ୍ରୀର ହୃତ୍‌ପିଣ୍ଡ ଯେପରି ଥରାଇ ଦେଉଥିଲା ।

ଭିଡ଼ ଠେଲି ବୀରେନ୍ଦ୍ର ସଙ୍ଗୀନ ଧରି ଛିଡ଼ା ହୋଇଥିବା ସୈନ୍ୟମାନଙ୍କ ପାଖରେ ପହଞ୍ଚିଲା । ସେମାନେ ସଙ୍ଗୀନ ଦେଖାଇ ଭିଡ଼କୁ ଧମକାଉଥିଲେ ।

କଲେକ୍ଟର ଆର୍ଥର ତଳକୁ ଆସିଲେ । ସେ ପାଟିକରି ପଚାରିଲେ—"ଆପଣମାନେ କଣ ଚାହାନ୍ତି ?"

"ଆମେ ସେକ୍ରେଟେରୀଏଟ୍ ଉପରେ ୟୁନିୟନ ଜ୍ୟାକ୍ ବଦଳରେ ତ୍ରିରଙ୍ଗ ପତାକା ଉଡ଼ାଇବୁ ।"

"ଏହା ବେଆଇନ କାମ । ଆପଣମାନେ ଫେରି ଯାଆନ୍ତୁ ।"

ଆଗ ଧାଡ଼ିରେ ଛିଡ଼ା ହୋଇଥିବା ବୀରେନ୍ଦ୍ର ସିହ୍ନା କଲେକ୍ଟରଙ୍କ ଆଗରେ ପହଞ୍ଚିଲେ ଏବଂ ସ୍ଥିର ତଥା ନିର୍ଭୀକ ଭାବରେ କହିଲେ—"ନା, ଆମେ ତ୍ରିରଙ୍ଗ ପତାକା ଉଡ଼ାଇ ସାରି ଫେରିବୁ ।"

କଲେକ୍ଟର କିଶୋର ଆଡ଼କୁ ଅନାଇଲେ । ତାଙ୍କ ଆଖି ଜଳୁଥିଲା । ଏତେ ଟିକିଏ ପିଲା, ଆଉ ଏତେ ସାହାସ ! ସେ ପ୍ୟାଣ୍ଟ୍ ପକେଟରେ ହାତ ଭର୍ତ୍ତି କଲେ । କୁଟିଳ ସ୍ୱରରେ କହିଲେ—"ତାହାହେଲେ ତୁ ପତାକା ଉଡ଼ାଇବୁ ! ତା ଆଗରୁ ତୋ ଛାତି ଖୋଲିଦେ ।"

ଆର୍ଥରଙ୍କ କଥା ଶୁଣିବା ମାତ୍ରେ ବୀରେନ୍ଦ୍ର ନିଜର ଜାମା ଚିରି ପକାଇଲେ ଏବଂ ଆଗକୁ ଆସି କହିଲେ—"ହେଇ ଛାତି ଖୋଲିଦେଲି । ଇଂରେଜ କୁତ୍ତା ! ଗୁଳି ଚଳା ।"

'ଧାଇଁ' ଶବ୍ଦ ହେଲା । ରକ୍ତର ପିଚ୍‌କାରୀ ଉଠି ବୀରେନ୍ଦ୍ରର ସୁକୁମାର ଦେହ ତଳେ ପଡ଼ିଯିବା ଆଗରୁ ଲୋକେ ତାଙ୍କୁ ଉଠାଇ ନେଲେ । 'ଇନ୍‌କିଲାବ୍ ଜିନ୍ଦାବାଦ' ଧ୍ୱନି ଦେଇ ଦେଇ ଜନସମୁଦ୍ର ଆଗକୁ ମାଡ଼ି ଚାଲିଲା ।

ପ୍ରତ୍ୟୁତ୍ତରରେ ଗୁଳିର ସ୍ରୋତ ମାଡ଼ି ଆସିଲା ଏବଂ ଅସଂଖ୍ୟ ରକ୍ତପଦ୍ମ ଭୂଇଁରେ ଫୁଟିଉଠିଲା । କିନ୍ତୁ ଏ ଭୀଷଣ

ଗୁଳିସ୍ରୋତ ନିରସ୍ତ୍ର ଜନତାକୁ ବିଚଳିତ କରିପାରିଲା ନାହିଁ । ଗୁଳି ଚାଲୁଥିଲା—ଲୋକେ ଟଳି ପଡ଼ୁଥିଲେ । ତଥାପି ଜନସ୍ରୋତ ସେକ୍ରେଟାରିଏଟ୍ ଆଡ଼କୁ ଆଗେଇ ଆସୁଥିଲା । ବାୟୁମଣ୍ଡଳ ବାରୁଦ ଗନ୍ଧରେ ଭରିଗଲା । 'ମହାତ୍ମା ଗାନ୍ଧିଙ୍କ ଜୟ' ଏବଂ 'ଇନ୍‌କିଲାବ୍ ଜିନ୍ଦାବାଦ୍' ଧ୍ୱନି ପାଟଣାର ଗଗନ ପବନକୁ ଥରାଇଦେଲା ।

ଗୁଳି ଚଳାଇବାକୁ ଆଦେଶ ଦେଇ ଦେଇ ଆର୍ଥର ଥକିଗଲେ ।

ହଠାତ୍ ସେକ୍ରେଟେରିଏଟ୍ ଉପର ପତାକା ସ୍ତମ୍ଭ ପାଖରୁ ଶବ୍ଦ ଶୁଭିଲା "ଇନ୍‌କିଲାବ୍, ଜିନ୍ଦାବାଦ" ସମସ୍ତଙ୍କ ଆଖି ଉପରକୁ ଉଠିଗଲା । ବିସ୍ମୟମିଶ୍ରିତ ଆନନ୍ଦ ସହକାରେ ସମସ୍ତେ ଦେଖିଲେ—ଜଣେ ଯୁବକ ୟୁନିୟନ ଜ୍ୟାକ୍‌କୁ କାଢ଼ି ତା ଜାଗାରେ ତ୍ରିରଙ୍ଗ ପତାକା ଉଡ଼ାଉଛି । ଆର୍ଥରଙ୍କ ଆଖି ମଧ୍ୟ ଏ ଯୁବକ ଉପରେ ପଡ଼ିଲା । ପରମୁହୂର୍ତ୍ତରେ ତାଙ୍କର ପିସ୍ତଲ ଗର୍ଜିଉଠିଲା । ଯୁବକର ମୃତ ଦେହ କୋଠା ଉପରୁ ଖସି ତଳେ ଆସି ପଡ଼ିଲା । "ତ୍ରିରଙ୍ଗ ପତାକାର ଜୟ" ଭିଡ଼ ଭିତରୁ ଶବ୍ଦ ଉଠିଲା ଏବଂ ଶୋଭାଯାତ୍ରାର ଆଗ ଧାଡ଼ି ଏହି ଶହୀଦ ଯୁବକଙ୍କ ଶବକୁ ଘେରି ଛିଡ଼ା ହେଲେ ।

"ଗୁଳି ଚଳାଅ" ଭିଡ଼ରୁ ଶବ୍ଦ ଶୁଭିଲା । "ଆମେ ଭାରତୀୟ, ମରିବାକୁ ଡରୁନାହୁଁ ।"

ଆର୍ଥର କିଛି ସମୟ ପର୍ଯ୍ୟନ୍ତ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିବାପରେ ସୈନ୍ୟବାହିନୀ ସହିତ ନିଜେ ସେଠାରୁ ଚାଲିଗଲେ । କଲେକ୍‌ଟର ଯିବାପରେ ଲୋକେ ମୃତ ଓ ଆହତ ବ୍ୟକ୍ତିଙ୍କୁ ଉଠାଇ ନେଲେ । କେତେଜଣ ଅନ୍ତିମ ନିଃଶ୍ୱାସ ନେଉଥିଲେ ।

ଡାକ୍ତରଖାନାରେ ବୀରେନ୍ଦ୍ରର ଜ୍ଞାନ ଫେରିଲା । ତାର ପ୍ରଥମ ପ୍ରଶ୍ନ ଥିଲା—"ସେକ୍ରେଟାରିଏଟ୍ ଉପରେ ପତାକା ଉଡ଼ାଯାଇଛି ନା ନାହିଁ ?" ଡାକ୍ତରଙ୍କ ପାଖରୁ ଅସ୍ତିବାଚକ ଉତ୍ତର ଶୁଣି ବୀରେନ୍ଦ୍ରର ଚେହେରାରେ ଆନନ୍ଦର ଝଲକ ଦେଖାଦେଲା ଏବଂ ସେ ସବୁଦିନ ପାଇଁ ଆଖି ବୁଜିଦେଲା ।

ଘଟଣା ସ୍ଥଳରେ ଛଅଜଣ ମରିଗଲେ । ଆହତମାନଙ୍କ ମଧ୍ୟରୁ ଡାକ୍ତରଖାନାରେ ତିନିଜଣ ପ୍ରାଣତ୍ୟାଗ କଲେ । ଏମାନଙ୍କ ଶରୀରରୁ ଯେଉଁ ଗୁଳି ବାହାର କରାଗଲା, ତାହା ଥିଲା ଭୟାନକ 'ଦମ୍ ଦମ୍' ଗୁଳି । ଆନ୍ତର୍ଜାତୀୟ ନିୟମାନୁସାରେ ଏ ଗୁଳି ଯୁଦ୍ଧରେ ମଧ୍ୟ ବ୍ୟବହାର କରାଯିବା ଉଚିତ୍ ନୁହେଁ । କିନ୍ତୁ ବ୍ରିଟିଶ ଶାସନ ଅମାନୁଷିକତାର ଚରମ ପର୍ଯ୍ୟାୟରେ ପହଞ୍ଚି ସାରିଥିଲା ।





# ଶାହୀଦ ଭଗତ୍ ସିଂହ

ସେ ଦିନ ଥିଲା ମାର୍ଚ୍ଚ ମାସ ତେଇଶି ତାରିଖ–୧୯୩୧ ମସିହା । ସୂର୍ଯ୍ୟ ଉଦୟ ପୂର୍ବରୁ ତିନିଜଣ ମହାନ୍ ସଂଗ୍ରାମୀଙ୍କୁ ଫାଶୀ ଖୁଣ୍ଟରେ ଝୁଲାଇ ଦିଆଗଲା । ସେମାନଙ୍କ ମଧ୍ୟରେ ଥିଲେ, ପ୍ରବଳ ପରାକ୍ରମୀ ଶହୀଦ ଭଗତ୍ ସିଂହ । ତାଙ୍କର ତ୍ୟାଗ, ଦେଶପ୍ରେମର କାହାଣୀ କେବଳ ଆଜି ନୁହେଁ, ଏହି ପୂଣ୍ୟ ଭାରତ ଭୂମି ଯୁଗ ଯୁଗ ଧରି ତାର ସନ୍ତାନମାନଙ୍କୁ ଶୁଣାଇ ଚାଲିଥିବ ।



ପଞ୍ଜାବ ପ୍ରଦେଶର ଲାୟାଲପୁର ଜିଲ୍ଲାର ଏକ ପ୍ରତିଷ୍ଠିତ ଶିଖ ପରିବାରରେ ୧୯୦୭ ସେପ୍ଟେମ୍ବର ମାସ ୨୭ ତାରିଖ ଶନିବାର ଦିନ ଭଗତ୍ ସିଂହ ଜନ୍ମଗ୍ରହଣ କରିଥିଲେ । ସେହିଦିନ ତାଙ୍କ କକା ସ୍ୱର୍ଣ୍ଣ ସିଂ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଜେଲ ଯାଇ କାରାଗାର ମଧ୍ୟରେ ମୃତ୍ୟୁବରଣ କରିଥିଲେ । ପିତାମହୀ ଜୟକାଉର ଈଶ୍ୱରଙ୍କ ପ୍ରଦତ୍ତ ଶିଶୁଟିର ନାମ ଦେଲେ ଭାଗ୍ୟବାନ୍ । ପରେ ସେ ଭଗତ୍ ସିଂହ ନାମରେ ପରିଚିତ ହେଲେ ।

ଭଗତ୍ ସିଂହଙ୍କ ପିତା ସର୍ଦ୍ଦାର କଶାନ୍ ସିଂହ ଓ କକା ଅର୍ଜିତ୍ ସିଂହ ସମସ୍ତେ ବିପ୍ଳବୀ ଥିଲେ । ପିତାମହ ଅର୍ଜ୍ଜୁନ ସିଂହ ବାଲ୍ୟକାଳରୁ ଦେଶସେବା ପାଇଁ ଭଗତ୍‌ଙ୍କୁ ପ୍ରବର୍ତ୍ତାଉ ଥିଲେ ।

ବାଲ୍ୟଶିକ୍ଷା ଶେଷ ନ କରି ସେ ୧୯୨୧ର ଅସହଯୋଗ ଆନ୍ଦୋଳନ ସଫଳ ନ ହେବାରୁ ନିରୁତ୍ସାହିତ ହୋଇ ହିଂସାପୂର୍ଣ୍ଣ ଉପାୟରେ ଦେଶ ସ୍ୱାଧୀନ ପାଇଁ ସଙ୍କଳ୍ପ କଲେ । ଏହାପରେ ସେ ହିନ୍ଦୁସ୍ଥାନ ରିପବ୍ଲିକାନ୍ ଆସୋସିଏସନର ସକ୍ରିୟ ସଭ୍ୟ ହେଲେ ଓ ଇଂରେଜ ଆଖିରେ ଧୂଳି ଦେବାପାଇଁ ସେ ନିଜର ଛଦ୍ମନାମ ଦେଲେ ବଳବନ୍ତ । ସେ "ପ୍ରତାପ" (ହିନ୍ଦୀ) "କୀର୍ତ୍ତି ସାରିଲ୍" (ଉର୍ଦ୍ଦୁ) ଓ ଯୁବ ଭାରତ (ପଞ୍ଜାବୀ) ଭାଷାରେ ତିନିଗୋଟି ପତ୍ରିକା ପ୍ରକାଶନ କରି ବିପ୍ଳବୀମାନଙ୍କ କାର୍ଯ୍ୟକଳାପ ଓ ଶହୀଦମାନଙ୍କ ଜୀବନୀ ପ୍ରକାଶ କଲେ ।

ନିଜେ ମଧ୍ୟ ନିୟମିତ "ବଳବନ୍ତ" ନାମରେ ଲେଖା ପ୍ରକାଶ କଲେ ।

୧୯୨୫ ଅଗଷ୍ଟ ୯ ତାରିଖରେ ସେହି ରିପବ୍ଲିକାନ୍ ପାର୍ଟି ପକ୍ଷରୁ କାକେରୀ ନାମକ ଏକ ରେଲଷ୍ଟେସନରୁ ଖଜଣା ଲୁଟି ହୋଇଥିଲା । ଏଥିରେ ଭଗତ୍‌ଙ୍କୁ ସନ୍ଦେହ କରାଗଲା । ଏଣୁ ସେ ସେଠାରୁ ଲାହୋର ପଳାଇଲେ ।

ଏହାପରେ ସେ ଉଚ୍ଚଶିକ୍ଷା ପାଇଁ ମନବଳାଇ ଲାଲାଜୀ ଲାଜପତ ରାୟଙ୍କ ପ୍ରତିଷ୍ଠିତ ନ୍ୟାସନାଲ୍ କଲେଜରେ ନାମ ଲେଖାଇଲେ । ସେ ସବୁଥିରେ ସର୍ବୋଚ୍ଚ ନମ୍ବର ରଖୁଥିଲେ । ସେଠାରେ ସେ ନିଜେ ଏକ ପାଠାଗାର ସ୍ଥାପନ କଲେ ।

୧୯୨୮ ସେପ୍ଟେମ୍ବର ୮ ତାରିଖରେ ଭଗତ୍ ଓ ବିଜୟ କୁମାର ସିହ୍ନାଙ୍କ ଆବାହକତ୍ୱରେ ଦିଲ୍ଲୀର ଫିରୋଜଶାହା ଘୋଷଲଙ୍କଠାରେ ସ୍ୱାଧୀନତା ସଂଗ୍ରାମ ପାଇଁ ବିପ୍ଳବୀମାନଙ୍କର ଏକ ବୈଠକ ହୋଇଥିଲା । ଏହି ଐତିହାସିକ ବୈଠକ ଦୁଇଦିନ ଧରି ଚାଲିଥିଲା । ଏଥିରେ ବିହାରର ଫନୀନ୍ଦ୍ର ଘୋଷ ଓ ମନମୋହନ ବାନାର୍ଜୀ,



କାନପୁରର ସୁରେନ୍ଦ୍ର ପାଣ୍ଡେ ଓ ବ୍ରହ୍ମଦତ୍ତ ମିଶ୍ର, ରାଜସ୍ଥାନର କୁନ୍ଦନଲାଲ, ପଞ୍ଜାବର ସୁଖଦେବ, ଉତ୍ତର ପ୍ରଦେଶର

ଜୟଦେବ କାପୁର ଓ ଶିବଦାସ ବର୍ମା ପ୍ରମୁଖ ଯୋଗ ଦେଇଥିଲେ ।

ବିପ୍ଳବୀ ଚନ୍ଦ୍ରଶେଖର ଆଜାଦ୍ ଓ ବିପ୍ଳବୀ ସୁବାଷଚନ୍ଦ୍ର ବୋଷ ଏଥିରେ ଯୋଗଦେଇ ନପାରି ସମର୍ଥନ ବାର୍ତ୍ତା ପଠାଇଥିଲେ । ଏହାପରେ ସେ ହିନ୍ଦୁସ୍ଥାନ ସମାଜସେବାବାଦୀ ଦଳ ପ୍ରତିଷ୍ଠା କଲେ ।

୧୯୨୮ ଅକ୍ଟୋବର ସାଇମନ କମିଶନ ଭାରତକୁ ଆସିବାର ଥିଲା । ଏହା ବିରୁଦ୍ଧରେ ପ୍ରବଳ ଜନବିକ୍ଷୋଭ ହୋଇଥିଲା । ଏହାର ନେତୃତ୍ୱ ନେଇଥିଲେ ଲାଲାଜୀ-ଲଜପତ୍ ରାୟ । ସାଣ୍ଡାସ୍ ସାହେବଙ୍କ ନିର୍ଦ୍ଦେଶରେ ପୋଲିସ୍‌ର ଲାଠି ପ୍ରହାରରେ ଲାଲା ଲଜ୍‌ପତ ରାୟ ଗୁରୁତର ଭାବରେ ଆହତ ହୋଇଥିବାରୁ ସେହି ବର୍ଷ ନଭେମ୍ବର ୧୭ରେ ମୃତ୍ୟୁ ଘଟିଲା । ଏହାର ଠିକ୍ ମାସକ ପରେ ଡ଼ିସେମ୍ବର ୧୭ରେ ସାଣ୍ଡାସ ସାହେବଙ୍କୁ ହତ୍ୟା କରାଗଲା । ପୋଲିସ ଭଗତ୍ ସିଂହଙ୍କୁ ଏଥିରେ ସନ୍ଦେହ କଲେ ।

ଏହା ଜାଣିପାରି ଭଗତ୍ ଲାହୋରରୁ ଲକ୍ଷ୍ନୌ ଚାଲିଗଲେ । ସେ ୟୁରୋପୀୟ ସାହେବ ବେଶ ଧାରଣ କରି ପୋଲିସ ଆଖିରେ ଧୂଳି ଦେବାପାଇଁ ବିପ୍ଳବୀ ଭଗବତୀ ଚରଣଙ୍କ ସ୍ତ୍ରୀ ଶ୍ରୀମତୀ ଦୁର୍ଗା ଦେବୀ ନିଜର ଦୁଇବର୍ଷର ଶିଶୁ ସଚୀକୁ ଧରି ସାହେବାନୀ ବେଶରେ ଭଗତଙ୍କ ସହ ଯାଇ ତାଙ୍କୁ ଲକ୍ଷ୍ନୌରେ ଛାଡ଼ିଲେ ଓ ଭଗତଙ୍କ ଚାକର ଭାବରେ ବିପ୍ଳବୀ ରାଜଗୁରୁ ତାଙ୍କର କିଟ୍‌ବ୍ୟାଗ ବୋହି ଯାଇ ପୋଲିସ ଆଖିରେ ଆଶ୍ଚର୍ଯ୍ୟଜନକ ଭାବରେ ଧୂଳିଦେଇ ଖସିଗଲେ ।

୧୯୨୯ ଅକ୍ଟୋବର ମାସ ୮ ତାରିଖ । ସେଦିନ ଭାରତୀୟ ଟ୍ରେଡ ୟୁନିୟନ ବିରୋଧୀ ଏକ ବିଲ୍ ଆସେମ୍ବ୍ଲିରେ ପାଶ୍ ହେବାର ଥାଏ । ଦୁଇଜଣ ୟୁରୋପୀୟ ଯୁବକ ଦର୍ଶକ ଗ୍ୟାଲେରୀରେ ବସିଥିଲେ । ଅଧିବେଶନ ଆରମ୍ଭରେ କିଛି ସମୟ ପରେ ଦୁଇଟି ହାତବୋମା ହଠାତ୍ ହଲ୍ ଭିତରେ ପଡ଼ିଲା । "ଇନ୍‌କିଲାବ୍ ଜିନ୍ଦାବାଦ" ଧ୍ୱନିରେ ପ୍ରକମ୍ପିତ ହେଲା । ଫୁଲାଏ ପ୍ରଚାରପତ୍ର ଫୋପାଡ଼ି ଦିଆଗଲା । ସେଇ ଦୁଇଜଣ ଥିଲେ ବିପ୍ଳବୀ ଭଗତ ସିଂ ଓ ବିପ୍ଳବୀ ବଟୁକେଶ୍ୱର ଦତ୍ତ । ସେହି ସଭାରେ ଥିଲେ, ପଣ୍ଡିତ ମୋତିଲାଲ ନେହେରୁ ଓ ପଣ୍ଡିତ ମଦନମୋହନ ମାଲବ୍ୟ ।

ଭାରତୀୟ ଯୁବକର ଅପୂର୍ବ ସାହସ ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇଥିଲେ । ଏହାପରେ ଭଗତ ସିଂହ ଦତ୍ତଙ୍କୁ ଗିରଫ କରାଗଲା ।

ଭଗତ୍ କାରାବରଣ ବା ଇଂରେଜ ସରକାରଙ୍କ କଠିନ ଦଣ୍ଡ ଏପରିକି ମୃତ୍ୟୁଦଣ୍ଡକୁ ସାଦରେ ଗ୍ରହଣ କରିବା ପାଇଁ ପ୍ରସ୍ତୁତ ଥିଲେ । ଜେଲ୍ ମଧ୍ୟରେ ତାଙ୍କ ପ୍ରତି କଠିନ ଦଣ୍ଡ ଓ ଯଥେଷ୍ଟ ଅବହେଳା କରାଗଲା । ଏହାର ପ୍ରତିବାଦ କରି ଦେଶସାରା 'ଭଗତ୍ ସିଂହ—ଦତ୍ତ ଦିବସ' ପାଳନ କରାଗଲା । ବିପ୍ଳବୀ ସୁଭାଷଚନ୍ଦ୍ର ବୋଷ, ଶ୍ରୀ ଅରବିନ୍ଦ ଘୋଷ, ପଣ୍ଡିତ ମୋତିଲାଲ ନେହେରୁ ପ୍ରମୁଖ ପ୍ରବୀଣ ନେତୃବୃନ୍ଦ ତାଙ୍କୁ ଜେଲ୍‌ରେ ସାକ୍ଷାତ କଲେ । ଅଧିକାଂଶ ସମୟରେ ନେହେରୁ ଭଗତଙ୍କୁ ସଂଗ୍ରାମ ପାଇଁ ଆର୍ଥିକ ସାହାଯ୍ୟ ମଧ୍ୟ ଦେଉଥିଲେ ।

ଏହାପରେ ସୁଖଦେବ ଓ ରାଜଗୁରୁଙ୍କୁ ବନ୍ଦୀ କରାଗଲା ।

ଲାହୋର ଷଡ଼ଯନ୍ତ୍ର ମାମଲାରେ ତାଙ୍କ ଉପରେ ହୋଇଥିବା ମିଥ୍ୟା ମକଦ୍ଦମାର ପୁନଃ ବିଚାର କରାଗଲା । ମିଥ୍ୟା ସାକ୍ଷୀ ପ୍ରଦାନ କରି ଗିରଫ ଭଗତଙ୍କୁ ଓ ରାଜଗୁରୁଙ୍କୁ ଫାଶୀ ହୁକୁମ ହେଲା । ଏ ସମ୍ବାଦ ସାଧାରଣରେ ପ୍ରବଳ ସ୍ରୋତରେ ପ୍ରଚାରିତ ହେଲା । ଦେଶସାରା ବିକ୍ଷୋଭ କରାଗଲା । ନିଜେ ମହାତ୍ମା ଗାନ୍ଧି ଲର୍ଡ଼ ଇରଉଇନ୍‌ଙ୍କୁ ଫାଶୀଦଣ୍ଡ କୋହଲ ପାଇଁ ନିବେଦନ କଲେ । ଲର୍ଡ଼ ଇରଉଇନ୍ ଏଇ ଦଣ୍ଡ କୋହଲ କରି ନିର୍ବାସନ ଦଣ୍ଡ ପ୍ରଦାନ କଲେ ଓ ଏହା ପ୍ରଚାର ନ କରିବାକୁ ଗାନ୍ଧିଙ୍କୁ କହିଲେ ।



ମାତ୍ର ସରକାରୀ କଲରୁ ଲିଖିତ ଅର୍ଡ଼ର ବଳମ୍ବରେ ପହଞ୍ଚାଇବାକୁ ତତ୍‌କାଳୀନ ପଞ୍ଜାବ ଗଭର୍ଣ୍ଣର ପୋଷ୍ଟମାଷ୍ଟର ଜେନେରାଲଙ୍କୁ ନିର୍ଦ୍ଦେଶ ଦେଇଥିଲେ । ଅନ୍ୟ ପକ୍ଷରେ

ମାର୍ଚ୍ଚ ୨୩, ୧୯୩୧ ପୂର୍ବରୁ ଫାଶୀ କାଏମ ପାଇଁ ନିର୍ଦ୍ଦେଶ ଦେଲେ ।

ଭଗତ୍ ସିଂହଙ୍କୁ ଶେଷ ଦର୍ଶନ ପାଇଁ ଓକିଲ ଆସଫ୍ ଅଲ୍ଲୀ ସପତ୍ନୀକ ଜେଲକୁ ଯାଇଥିଲେ । ସେତେବେଳେ ଭଗତ କବିତା ଲେଖୁଥିଲେ ଓ ଗୁଣୁଗୁଣୁ ହୋଇ ଗାଉଥିଲେ । ସେ ପ୍ରଫୁଲ୍ଲ ଥିଲେ । ଫାଶୀ ପାଇଁ ତିଳେହେଲେ କୁଣ୍ଠାବୋଧ କରୁ ନ ଥିଲେ ।

ନିଜ ଅନ୍ତରଙ୍ଗ ବନ୍ଧୁ ସୁଖଦେବ ଓ ରାଜଗୁରୁଙ୍କ ସହିତ ଫାଶୀକାଠ ଉପରକୁ ଚଢ଼ିବା ପୂର୍ବରୁ ସହାସ୍ୟ ବଦନରେ ୟୁରୋପୀୟ ଡେପୁଟୀ ଜେନେରାଲ କମିଶନରଙ୍କୁ କହିଥିଲେ—"ମାଜିଷ୍ଟ୍ରେଟ୍ ତୁମେ ଅତ୍ୟନ୍ତ ସୌଭାଗ୍ୟଶାଳୀ, କାରଣ ଭାରତୀୟ ବିପ୍ଳବୀ କିପରି ନିଜର ସର୍ବୋଚ୍ଚ ଆଦର୍ଶକୁ ପ୍ରତିଷ୍ଠା କରିବା ନିମିତ୍ତ ମୃତ୍ୟୁକୁ ଆଲିଙ୍ଗନ କରିପାରେ, ତାହା ଆଜି ତୁମେ ସ୍ୱଚକ୍ଷୁରେ ଦେଖିପାରିବ ।





# ଶହୀଦ ବାଘା ଯତିନ

୧୮୭୯ ମସିହା ଡ଼ିସେମ୍ବର ମାସ ୮ ତାରିଖରେ ନଦିଆ ଜିଲ୍ଲାର କୁଷ୍ଟିଆ ସବ୍‌ଡ଼ିଭିଜନ ଅନ୍ତର୍ଗତ କୟା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ମାତ୍ର ୫ ବର୍ଷ ବୟସରେ ନିଜ ପିତାଙ୍କୁ ହରାଇଥିଲେ । ମା' ଶାରଦାଶଶୀ ଦେବୀଙ୍କ ଦ୍ୱାରା ସେ ଲାଳିତ ପାଳିତ ହୋଇଥିଲେ । ୧୮୯୩ ରେ ସେ ସ୍କୁଲ ଶିକ୍ଷା ସମାପ୍ତ କରି କଲିକତାର ସେଣ୍ଟ୍ରାଲ କଲେଜରେ ଉଚ୍ଚଶିକ୍ଷା ଅଧ୍ୟୟନ କରିଥିଲେ ।

ପାଠ ପଢ଼ିବାକୁ ପଇସା ଅଭାବରୁ ସେ ପଢ଼ାସାଙ୍ଗକୁ ସର୍ଟହ୍ୟାଣ୍ଡ ଟାଇପ୍ ମଧ୍ୟ ଶିକ୍ଷା କରୁଥିଲେ । ଏହା ସହିତ ସେ ମଲ୍ଲଯୁଦ୍ଧ, ଲାଠି, ଖଣ୍ଡା ଓ ଛୁରିଖେଳ ମଧ୍ୟ ଶିକ୍ଷା କରୁଥିଲେ । ଜଣେ ଅବସରପ୍ରାପ୍ତ ମୁସ୍‌ଲିମ୍ ସିପାହୀଙ୍କଠାରୁ ଏସବୁ ସେ ଶିକ୍ଷା କରୁଥିଲେ ।

ପାଠପଢ଼ାରେ ସେ ଜଣେ ଇଂରେଜ ସୌଦାଗରର ଅଫିସରେ ମାସିକ ୫୦ ଟଙ୍କା ଦରମାରେ ଚାକିରି କଲେ । ସେଠାରେ ଇଂରେଜମାନେ କିପରି ଭାରତୀୟମାନଙ୍କୁ ଅକଥନୀୟ ଅତ୍ୟାଚାର କରୁଥିଲେ, ତାହା ସ୍ୱଚକ୍ଷୁରେ ଦେଖି ପାରିଥିଲେ । ଏସବୁ ଦେଖି ତାଙ୍କ ମନରେ ବିଦ୍ରୋହ ଜାତ ହୋଇଥିଲା ।

ପାଠ ପଢୁଥିବା ସମୟରେ ଥରେ ଖରାଦିନ ଛୁଟିରେ ଯତୀନ ତାଙ୍କ ମାମୁଁ ଘରକୁ ବୁଲି ଯାଇଥିଲେ । ସେ ସମୟରେ ସେଠାରେ ପ୍ରବଳ ବାଘ ଉପଦ୍ରବ ହେଉଥିଲା । ତାଙ୍କ ମାମୁଁ ଜଣେ ଶିକାରୀ ଥିଲେ । ଥରେ ସେ ତାଙ୍କ

ମାମୁଁ ପୁଅ ଭାଇ ସଙ୍ଗରେ ବଣକୁ ଶିକାର ଦେଖିବାକୁ ଯାଇଥିଲେ । ସେ ବନ୍ଧୁକ ନେଇଥାନ୍ତି ଓ ଯତୀନ ସାଙ୍ଗରେ କେବଳ ଗୋଟିଏ ଭୁଜାଲି ନେଇଥାନ୍ତି । ଜଙ୍ଗଲରେ ବାଘ ଆସିବାର ଦେଖି ତାଙ୍କ ଭାଇ ଗୁଳି ଚଳାଇଲେ । ଦୈବାତ୍ ଗୁଳିଟି ବାଘ ଦେହରେ ବାଜିଲା ନାହିଁ । ବାଘ ଗର୍ଜ୍ଜନ କରି ତାଙ୍କ ଆଡ଼କୁ ମାଡ଼ି ଆସିଲା ।

ଏହା ଦେଖି ସେମାନେ ଦୌଡ଼ି ପଳାଇଲେ, କିନ୍ତୁ ସାହସୀ ଯତୀନ ବାଘକୁ ଡରି ନଯାଇ ବୀରପରି ବାଘସହ ଲଢ଼େଇ କରି ନିଜ ଭୁଜାଲି ଦ୍ୱାରା ବାଘକୁ କ୍ଷତବିକ୍ଷତ କରି ପକାଇଲେ ।



ଏହାପରେ ସ୍ଥାନୀୟ ଲୋକମାନଙ୍କ ସାହାଯ୍ୟରେ ବାଘଟିକୁ ମାରି ପକାଇଲେ । ସମସ୍ତେ ବାହା ବାହା କଲେ । ସେ ଗାଁରେ ଯତୀନ ବୋଲି ଆଉ ଗୋଟିଏ ପିଲା ଥିଲା । ଏଣୁ ଯତୀନକୁ ଡାକିବାକୁ ଗଲେ ଲୋକେ ବାଘାଯତୀନ ବୋଲି ଡାକିଲେ । ପରେ ସମସ୍ତେ ତାଙ୍କୁ ବାଘାଯତୀନ୍ ବୋଲି ଡାକିଲେ ।

କଲେଜରେ ପଢ଼ିବା ସମୟରେ ସେ ସ୍ୱାମୀ ବିବେକାନନ୍ଦ, ଭଗିନୀ ନିବେଦିତା ଓ ଯୋଗୀ ଶ୍ରୀ ଅରବିନ୍ଦଙ୍କ ସଂସ୍ପର୍ଶରେ ଆସିଥିଲେ । ଶ୍ରୀ ଅରବିନ୍ଦଙ୍କ ନିର୍ଦ୍ଦେଶରେ ସେ ୧୮୦୩ରେ ଏକ ଗୁପ୍ତ ସମିତି ଗଠନ କରିଥିଲେ ।

ସେ ସମୟରେ ବିପ୍ଳବୀ ସଭର କର, ହର ଦୟାଲ, ତାରକାନାଥ ଦାସ, ମୋହନ ସିଂ ପ୍ରଭୃତି ବିପ୍ଳବୀମାନେ ବିଦେଶରେ ଥାଇ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କରିଥିଲେ । ସେମାନେ ଆମେରିକାରେ 'ଗଦ୍ଦର ପାର୍ଟି' ନାମକ ଏକ ଦଳ ଗଠନ କରିଥିଲେ । ୧୮୫୭ ସିପାହୀ ବିଦ୍ରୋହକୁ ଅନୁକରଣ କରି 'ଗଦ୍ଦର' ନାମକ ଏକ ସପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ସେଥିରେ 'ଗଦ୍ଦର ପାର୍ଟି' ପାଇଁ ଯୁବ ସଭ୍ୟ ଆବଶ୍ୟକ ବୋଲି ଏକ ସମ୍ବାଦ ପ୍ରକାଶ ପାଇଥିଲା ।

ସେଥିରେ ଲେଖାଥିଲା ଯେ ଭାରତରେ 'ଗଦ୍ଦର' ଆନ୍ଦୋଳନ ପାଇଁ ସାହସୀ ଯୁବକର୍ମୀ ଆବଶ୍ୟକ । ଦରମା— ମୃତ୍ୟୁ, ପୁରସ୍କାର ଶହୀଦର ସମ୍ମାନ, ପେନସନ୍-ସ୍ୱାଧୀନତା ଓ କର୍ମକ୍ଷେତ୍ର ଭାରତ । ଏହି ଗଦ୍ଦର ପାର୍ଟି ସହିତ ବାଘା ଯତୀନ ସମ୍ପର୍କ ରଖିଥିଲେ ।

୧୯୧୪ରେ ପ୍ରଥମ ଯୁଦ୍ଧ ସମୟରେ ଗୋଟିଏ ପଟେ ଇଂରେଜ ଓ ତାର ମିତ୍ର ଶକ୍ତି ଅନ୍ୟ ପକ୍ଷରେ ଜର୍ମାନ୍ ଓ ତାର ମିତ୍ର ଶକ୍ତି ମଧ୍ୟରେ ଲଢ଼େଇ ଲାଗିବାବେଳେ ଇଂରେଜ ସରକାର ଭାରତରୁ ବହୁ ସୈନ୍ୟଙ୍କୁ ଯୁଦ୍ଧ ପାଇଁ ନେଇ ଯାଇଥିଲେ । ଏହାର ସୁଯୋଗ ଦେଖି ସଶସ୍ତ୍ର ସଂଗ୍ରାମ କରି ଭାରତକୁ ସ୍ୱାଧୀନତା ଆଣିବା ପାଇଁ ଉଗ୍ରପନ୍ଥୀମାନେ ପ୍ରସ୍ତୁତ ହୋଇଥିଲେ । ଯୁଦ୍ଧ ପାଇଁ ବିଦେଶରୁ ବିଶେଷ କରି

ଜର୍ମାନୀରୁ ବିଭିନ୍ନ ଅସ୍ତ୍ରଶସ୍ତ୍ର ସାହାଯ୍ୟ ପାଇଁ ସେମାନେ ମାନବେନ୍ଦ୍ରନାଥ ରାୟଙ୍କୁ ପଠାଇଥିଲେ ।



ଦେଶ ମଧ୍ୟରେ ଅସ୍ତ୍ରଶସ୍ତ୍ର ଯୋଗାଡ଼ କରିବା ପାଇଁ ବାଘାଯତୀନ୍‌ଙ୍କୁ ଦାୟିତ୍ୱ ଦିଆଯାଇଥିଲା ।

ସେ ସମୟରେ କଲିକତାର "ରଡ଼୍‌ଡ଼ା କମ୍ପାନୀ" ନାମକ ଏକ ବଡ଼ ଅସ୍ତ୍ରଶସ୍ତ୍ର ବିକ୍ରୟ କମ୍ପାନୀ ଥିଲା । ସେ କମ୍ପାନୀ କାଶ୍ମୀର, ନେପାଳ ଓ ଅନ୍ୟ କରଦ ରାଜ୍ୟଗୁଡ଼ିକୁ ଗୋଲାବାରୁଦ ବିକ୍ରୟ କରୁଥିଲା । ସେହି କମ୍ପାନୀକୁ ଜାହାଜରେ କିଛି ଗୋଲା ବାରୁଦ ଆସୁଥିଲା । ଜାହାଜରୁ ମାଲ୍ ଖଲାସ୍ ପରେ ସେଗୁଡ଼ିକୁ ଗୋଦାମ୍ ଘରେ ପହଞ୍ଚାଇବା ପାଇଁ ଶ୍ରୀଶ ମିତ୍ର ନାମକ ଜଣେ କିରାଣୀ ଦାୟିତ୍ୱରେ ଥିଲେ । ୭ଟି ଶଗଡ଼ ଗାଡ଼ିରେ ଅସ୍ତ୍ରଶସ୍ତ୍ର ସବୁ ଗୋଦାମ ଘରେ ରଖିବା ପାଇଁ ଆସିଲା । କିନ୍ତୁ ବାଟରେ ଗୋଟିଏ ଗାଡ଼ିରୁ ଉଗ୍ରପନ୍ଥୀମାନେ ସବୁ ଅସ୍ତ୍ରଶସ୍ତ୍ର ଲୁଟି ନେଲେ ।

ଏଥିପାଇଁ ଇଂରେଜ ସରକାର ବାଘା ଯତୀନ୍‌ଙ୍କୁ ସନ୍ଦେହ କଲେ । ଏହା ଜାଣିପାରି ବାଘା ଯତୀନ୍ ତାଙ୍କର ଚାରିଜଣ ସାଥୀ ଚିତ୍ତପ୍ରିୟ ରାୟ, ମନୋରଞ୍ଜନ ସେନ୍‌ଗୁପ୍ତ, ନରେନ୍ଦ୍ର ଦାସଗୁପ୍ତ ଓ ଜ୍ୟୋତିଷ ପାଲ୍‌ଙ୍କ ସହିତ ଛଦ୍ମ ବେଶରେ କଲିକତାରୁ ଓଡ଼ିଶା ପଳାଇ ଆସି ମୟୂରଭଞ୍ଜର କାପ୍ତିପଦାଠାରେ ରହିଥିଲେ ।

ବାଘାଯତୀନ୍ ଓଡ଼ିଶାକୁ ଆସିବାର ଅନ୍ୟ ଏକ କାରଣ ମଧ୍ୟ ଥିଲା । ଜର୍ମାନରୁ ଯେଉଁ ଅସ୍ତ୍ରଶସ୍ତ୍ର ଆସୁଥିଲା, ସେଥିରୁ କିଛି ମାଲ୍ ବାଲେଶ୍ୱରର ଚାନ୍ଦିପୁର ବନ୍ଦରରେ ଓହ୍ଲାଇବାର ଥିଲା । ସେ ସବୁକୁ ସଂଗ୍ରହ କରିବା ଦାୟିତ୍ୱ ବାଘାଯତୀନଙ୍କ ଉପରେ ଥିଲା । ଦୁର୍ଯୋଗକୁ ଏହି ଜାହାଜଟି ଡଚ୍‌ମାନଙ୍କ ଦ୍ୱାରା ଜାଭାଠାରେ ଖାନ୍‌ତଲାସ ହୋଇ ଫେରିଗଲା । ଏହି ଅସ୍ତ୍ର ଆଣୁଥିବା ନରେନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ ଛଦ୍ମବେଶରେ ଆମେରିକା ପଳାଇଲେ ଓ ସେଠାରେ ଧରାପଡ଼ିଲେ ।

ବିପ୍ଳବୀ ଚାରିଜଣଙ୍କ ମଧ୍ୟରୁ ଜଣେ ବାଲେଶ୍ୱରର ମୋତିଗଞ୍ଜ ବଜାରରେ ନିଜକୁ ସିଲେଶ୍ୱର ବସୁ ଛଦ୍ମ ନାମରେ ପରିଚୟ ଦେଇ ସେଠାରେ 'ୟୁନିଭରସିଅଲ ଏମ୍ପୋରିୟମ୍' ନାମକ ଏକ ସାଇକେଲ ମରାମତି କାରଖାନା କରିଥିଲେ । ସେ ଦୋକାନୀର କାମ ହେଲା ଇଂରେଜ-ମାନଙ୍କ ଗତିବିଧି ସମ୍ପର୍କରେ ଦଳର ନେତା ବାଘାଯତୀନ୍‌ଙ୍କୁ ଖବର ଦେବା । କିଛିଦିନ ଗଲାପରେ କ୍ରମେ କ୍ରମେ ସେଠାରେ ବଙ୍ଗାଳୀମାନଙ୍କ ଆଡ୍‌ଡ଼ା ସ୍ଥଳୀରେ ପରିଣତ ହେଲା ।

ବାଲେଶ୍ୱର ପୋଲିସ ଏଇ ଦୋକାନ ଉପରେ ସନ୍ଦେହ କରି ୧୯୧୫ ସେପ୍ଟେମ୍ବର ମାସ ୯ ତାରିଖ ରାତିରେ ଅଗ୍ନିନଙ୍କ ଚଢ଼ଉ କଲେ । ସେତେବେଳକୁ ଶ୍ରୀ ବସୁ ସେଠାରୁ ପଳାଇ ଯାଇଥିଲେ । ପୋଲିସ ସେଠାରୁ କୌଣସି ଆପତ୍ତି ଜନକ ଜିନଷ ପାଇଲେ ନାହିଁ । ତେବେ ଖଣ୍ଡିଏ ଚିରୁଟା କାଗଜ ପାଇଲେ, ଯେଉଁଥିରେ ଲେଖାଥିଲା 'କପ୍ତିପଦା' ।

ଗୋଇନ୍ଦା ବିଭାଗ କର୍ମକର୍ତ୍ତା ମିଃ. ଡେନ୍‌ହାମ୍, ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ ମିଃ. କିଲ୍‌ବିଙ୍କୁ ନେଇ ସେଦିନ ରାତାରାତି ବାଲେଶ୍ୱରଠାରୁ ୨୫ କି.ମି. ଦୂରବର୍ତ୍ତୀ କପ୍ତିପଦାର ଗୁପ୍ତ ଆଶ୍ରୟସ୍ଥଳକୁ ପୋଲିସ ଦଖଲ କଲେ । ସେଠାରେ ସେମାନେ ସୁନ୍ଦରବନର ମାନଚିତ୍ର ଓ ସେଠାରେ ପହଞ୍ଚିବାକୁ ଥିବା ଅସ୍ତ୍ରଶସ୍ତ୍ର ବୋଝେଇ ଜାହାଜ ସମ୍ପର୍କରେ କେତେକ ଗୁପ୍ତକାଗଜପତ୍ର ପୋଲିସ୍ ଜବତ କରିଥିଲେ । ଏହାପରେ ସେମାନେ କପ୍ତିପଦାର ଜଙ୍ଗଲ ଭିତରେ ପଶିଲେ ।

ସେ ସମୟରେ ଅଫିସରମାନେ ଜଙ୍ଗଲ ଭିତରେ ହାତୀ ଉପରେ ଚଢ଼ି ଯାଉଥିଲେ ଓ ହାତୀ ବେକରେ ଏକ ଘଣ୍ଟି ଲଗାଯାଉଥିଲା । ଜଙ୍ଗଲରେ ହାତୀ ବେକର ଘଣ୍ଟି ଶବ୍ଦ ଶୁଣି ଜଣେ ଗ୍ରାମବାସୀ ଯାଇ ସେଠାରେ ଥିବା ଜଣେ ସାଧୁବାବାଙ୍କୁ ଯାଇ ଖବର ଦେଲା । ସେଇ ସାଧୁବାବା ହେଉଛନ୍ତି ବିପ୍ଳବୀ ବାଘାଯତୀନ । ସେଠାରେ ସାଧୁବାବା ନାମରେ ପରିଚିତ ହୋଇଥିଲେ । ପୋଲିସ ଆସୁଥିବାର ଖବର ପାଇ ସେଠାରୁ ସେ ପଳାଇ ଯାଇ, ନିଜ ସାଥୀମାନଙ୍କୁ ଖବର ଦେଇଥିଲେ ।

ଏଣେ ବାଘାଯତୀନଙ୍କୁ ନ ପାଇ ଇଂରେଜମାନେ ଗାଁ ଗାଁରେ ଘୋଷଣା କଲେ ଯେ ଜର୍ମାନ ଓ ବେଙ୍ଗଲରୁ ଦଲେ ଡକାୟତ ଏଠାରେ ଲୁଚି ରହିଛନ୍ତି । ଯେଉଁମାନେ ସେମାନଙ୍କୁ ଧରିଦେବେ, ସେମାନଙ୍କୁ ଦୁଇଶହ କରି ଟଙ୍କା ପୁରସ୍କାର ଦିଆଯିବ ।



ବାଘାଯତୀନ ନିଜ ସାଥୀମାନଙ୍କ ସହ ଆଲୋଚନା କରି ନିଷ୍ପତ୍ତି ନେଲେ ଯେ, ସମସ୍ତ ଯୋଜନା ବିଫଳ ହେଲା । ଇଂରେଜମାନଙ୍କ ହାତରେ ଧରାପଡ଼ି ଜେଲ୍ ଯିବା ଅପେକ୍ଷା ବରଂ ସମ୍ମୁଖ ଯୁଦ୍ଧ କରି ମୃତ୍ୟୁବରଣ କରିବା ଭଲ । ଗାଁ ଭିତରେ ସମ୍ମୁଖ ଯୁଦ୍ଧ କରିବା ଦ୍ୱାରା ନିରୀହ ଗ୍ରାମବାସୀମାନେ ମୃତ୍ୟୁବରଣ କରିବା ଭୟରେ ସେମାନେ ତାଲଡ଼ିହି, ହରିପୁର ଓ ଗୋବିନ୍ଦପୁର ଗାଁ ବାଟ ଦେଇ ସେଠାରୁ ବୁଢ଼ାବଳଙ୍ଗ ନଦୀ ପାର ହୋଇ ଜଙ୍ଗଲ ଆଡ଼େ ଚାଲିଲେ ।

ଏହାଦେଖି ଗ୍ରାମବାସୀମାନେ ଭାବିଲେ, ପୋଲିସ ଯାହା କହୁଥିଲେ ଠିକ୍ କହୁଥିଲେ । ସେମାନେ ପ୍ରକୃତରେ

ଡକାଯିବା । ପୁରସ୍କାର ପାଇବା ଲୋଭରେ ଗାଁର ଲୋକମାନେ 'ବାଘାଯତୀନଙ୍କୁ ଧରିବାକୁ ଗୋଡ଼ାଇଲେ ଓ ଇଂରେଜମାନଙ୍କୁ ଖବର ଦେଲେ । ଗ୍ରାମବାସୀମାନଙ୍କ ସହାୟତାରେ ପୋଲିସ ସେମାନଙ୍କ ଉପରେ ଗୁଳି ଚଳାଇଲେ ଓ ଆତ୍ମ-ସମର୍ପଣ ପାଇଁ ଆହ୍ୱାନ ଦେଲେ । କିନ୍ତୁ ବାଘାଯତୀନ ଓ ସହକର୍ମୀମାନେ ଏକ ଢ଼ିଙ୍କା କଡ଼ରେ ଲୁଚିରହି ପାଲଟା ଗୁଳି ଚଳାଇଲେ । ଯତୀନଙ୍କ ସହିତ ଚିତ୍ତପ୍ରିୟ, ମନୋରଞ୍ଜନ, ନରେନ୍ ଓ ଜ୍ୟୋତିଷ ଥିଲେ ।




ଇଂରେଜମାନଙ୍କ ଗୁଳିବାରୁଦ ତୁଳନାରେ ବାଘାଯତୀନଙ୍କ ପାଖରେ ଯଥେଷ୍ଟ ଗୁଳାବାରୁଦ ନଥିଲା । ଇଂରେଜମାନଙ୍କ ଗୁଳିରେ ପ୍ରଥମେ ଚିତ୍ତପ୍ରିୟଙ୍କ ମୃତ୍ୟୁ ହେଲା । ବାଘାଯତୀନ ଓ ଜ୍ୟୋତିଷ ଗୁରୁତର ଆହତ ହେଲେ । ଅନ୍ୟ ଦୁଇଜଣ ଆତ୍ମସମର୍ପଣ କଲେ । ସେମାନେ ସମସ୍ତଙ୍କୁ ଗିରଫ

କଲେ । ତା ପରଦିନ ୧୦ ତାରିଖରେ ଗିରଫ ଓ ଶଙ୍କାସ୍ରିତ ଅବସ୍ଥାରେ ବାଘାଯତୀନ ଡାକ୍ତରଖାନାରେ ଶହୀଦ ହୋଇଥିଲେ । ଇଂରେଜମାନେ ତାଙ୍କର ସାହସ ଦେଖି ଡରିଯାଇଥିଲେ ।



ଅନ୍ୟ ତିନିଜଣଙ୍କର ଟ୍ରିବ୍ୟୁନାଲ ଗଠିତ ହୋଇ ବିଚାର କରାଯାଇ ସେମାନଙ୍କୁ ଫାଶୀ ଦିଆଯାଇଥିଲା । ଜ୍ୟୋତିଷଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇ ଆଣ୍ଡାମାନ ଦ୍ୱୀପପୁଞ୍ଜକୁ ପଠାଇ ଦିଆଗଲା ।



# ରାଜପୁତ ବୀର ପ୍ରତାପ

କେତେକଜଣଙ୍କର ଧାରଣା ଥାଏ, ଦେହରେ ପ୍ରଚୁର ବଳଥିଲେ, ଘୋଡ଼ା ଚଢ଼ା ଶିଖିଥିଲେ, ଧନୁ ବା ବନ୍ଧୁକ ଚାଳନା ଶିଖିଥିଲେ, ତେବେ ଯାଇ ଶତ୍ରୁର ସମ୍ମୁଖୀନ କରିହେବ । କିନ୍ତୁ ଭାରତ ଇତିହାସରେ ଏଭଳି କେତେକ ବୀରପୁରୁଷଙ୍କ ନାମ ଅଛି, ସେମାନେ ଯୋଦ୍ଧା ନୁହନ୍ତି— କିନ୍ତୁ ଯୁଦ୍ଧ କରିଛନ୍ତି । ହାତ ନଥାଇ ବନ୍ଧୁକ ଚାଳନା କରିଛନ୍ତି ।

ରାଜକୁମାରୀ ହୋଇ ମଧ୍ୟ ଯୁଦ୍ଧ କ୍ଷେତ୍ରରେ ଅବତୀର୍ଣ୍ଣା ହୋଇଛନ୍ତି । ଏହା କିଭଳି ସମ୍ଭବ ହେଲା ? ଏଥିପାଇଁ କେତେକ ସ୍ଥଳରେ ପରିସ୍ଥିତି ଦାୟୀ ସତ, କିନ୍ତୁ ଅଧିକାଂଶ କ୍ଷେତ୍ରରେ ଦେଶପ୍ରେମ ଏବଂ ମନୋବଳ ଏଭଳି ଅସମ୍ଭବକୁ ସମ୍ଭବ କରାଇ ପାରିଛି ।

ରାଜପୁତମାନେ ଯୋଦ୍ଧା ଏବଂ ବୀରଜାତି ଭାବେ ପରିଚିତ । ଜାତିର ଇଜ୍ଜତ, ମାତୃଭୂମିର ସମ୍ମାନ ରକ୍ଷା ପାଇଁ ସେମାନେ ପ୍ରାଣମୂର୍ଚ୍ଛା ଲଢ଼ନ୍ତି । ରଣକ୍ଷେତ୍ରରେ ପ୍ରାଣ ଦେବାକୁ ସେମାନେ ଗର୍ବ ଓ ଗୌରବ ମନେ କରନ୍ତି । ତେଣୁ ରାଜପୁତମାନଙ୍କର ଛୋଟ ପିଲାମାନଙ୍କୁ ମଧ୍ୟ ଘୋଡ଼ା ଚଢ଼ା, ଖଣ୍ଡା, ତରବାରୀ ଚାଳନା ପ୍ରଭୃତି ଶିକ୍ଷା ଦିଆଯାଏ । ସମସ୍ତ ରାଜପୁତ ନିଜକୁ ଜଣେ ଜଣେ ସୈନ୍ୟପରି ମନେ କରନ୍ତି । ତାଙ୍କର ସ୍ୱାଭିମାନ ନିକଟରେ ସମସ୍ତ ଶକ୍ତି ପରାଜୟ ସ୍ୱୀକାର କରେ ।

ଚିତୋର ରାଜ୍ୟର ରାଜପୁତ ପରିବାରରେ ପ୍ରତାପର ଜନ୍ମ ହେଲା । କିନ୍ତୁ ସେ ଯୁଦ୍ଧ ଶିକ୍ଷାରେ ମୋଟେ ମନ ବଳାଇଲା ନାହିଁ । କେବଳ ଗୀତ, ଆଉ ସୀତାର ବାଦନରେ ସମୟ କଟାଇଲା । ଘରେ ଗାଆଁରେ ସମସ୍ତେ ତାକୁ ବୁଝାନ୍ତି—"ତୁ ରାଜପୁତ କୂଳରେ ଜନ୍ମ ହୋଇଛୁ । ନିଜ ଜାତିର ସ୍ୱାଭିମାନ ରକ୍ଷା କରିବା ପାଇଁ ତୁ ତ ଯୁଦ୍ଧ ଶିକ୍ଷା କରୁନାହୁଁ, ଶତ୍ରୁ କବଳରୁ ନିଜକୁ କିପରି ରକ୍ଷା କରିବୁ ?

ଏ ଦେଶ ପାଇଁ ତୁ କିଛି କରିପାରିବୁ ନାହିଁ । ନାଚ ଗୀତ ସୀତାର ବାଦନ, ଏ ଗୁଡା ସବୁ ମାଇଚିଆଙ୍କ କାମ । ତୁ ସବୁଦିନ କିଛି କିଛି ଯୁଦ୍ଧବିଦ୍ୟା ଶିକ୍ଷା କର । ନିଜ କର୍ମଟା ଚଳିଯିବ । ସେ ଗୀତ ଫିତ ଏବେ ଛାଡ଼ ।

ପ୍ରତାପ ସମସ୍ତଙ୍କ କଥା ଶୁଣେ, ନୀରବ ରହେ । ବେଳେ ବେଳେ କହି ପକାଏ, "ଦେଶସେବା କରିବାକୁ ଯଦି ପ୍ରକୃତରେ ଇଚ୍ଛାଥିବ, ତେବେ ଏହି ସଙ୍ଗୀତ, ସୀତାର ଦ୍ୱାରା ମଧ୍ୟ କରିହେବ । କେବଳ ଯୋଦ୍ଧା ବୀରମାନେ ଯେ



ଦେଶସେବା କରିପାରିବେ, ସେଭଳି ଭାବିବା ଠିକ୍ ନୁହେଁ ।"

ପ୍ରତାପର କଥା ଶୁଣି ଅନ୍ୟମାନେ ହସି ଉଠନ୍ତି । କେହି କେହି କହି ପକାନ୍ତି—"ପୁଅ ପାନେ ପାଇଲେ, ସବୁ କଥା ବୁଝିଯିବ । ବଡ଼ଲୋ ଯୁଦ୍ଧବିଦ୍ୟା ଶିଖିବାକୁ ଆସିବ ଯେ ।"

ପ୍ରତାପର ଦୃଢ଼ ମନୋବଳ ଆଉ ବିଶ୍ୱାସ ଥାଏ, ସେ ସଙ୍ଗୀତ ମାଧ୍ୟମରେ ବିପଦବେଳେ ଶତ୍ରୁର ମୁକାବିଲା କରିବ । ନିଜ ଭାଇମାନଙ୍କୁ ଉତ୍ସାହିତ କରିବ । ମନକଥା ତାର ମନରେ ଥାଏ ।

ସେତେବେଳେ ଦିଲ୍ଲୀରେ ମୋଗଲ ଶାସନ ଚାଲୁଥାଏ । ଚିତ୍ତୋର ରାଜ୍ୟର ସମୃଦ୍ଧି ଏବଂ ଚିତ୍ତୋର ଦୁର୍ଗର କରାମତି ବିଷୟ ମୋଗଲମାନେ ପୂର୍ବରୁ ଶୁଣିଥିଲେ । ଏହି ସମୃଦ୍ଧିଶାଳୀ ଚିତ୍ତୋର ରାଜ୍ୟକୁ ନିଜ ଅଧିକାରକୁ ଆଣିବା ପାଇଁ ମୋଗଲ ଶାସକମାନେ ସବୁବେଳେ ଇଚ୍ଛା ପ୍ରକାଶ କରି ଆସୁଥିଲେ । କିନ୍ତୁ ରାଜପୁତ ବୀରମାନଙ୍କର ଦେଶପ୍ରେମ ଏବଂ ସାହସ ଦେଖି ଚିତ୍ତୋର ଆକ୍ରମଣ କରିବାକୁ ସାହସ କରୁ ନଥିଲେ ।

ସମସ୍ତ ଶକ୍ତି ଓ ସୈନ୍ୟବଳ ନେଇ ଦିଲ୍ଲୀର ବାଦଶାହ ଥରେ ଚିତ୍ତୋରଗଡ଼ ଆକ୍ରମଣ କଲେ । ଚିତ୍ତୋରଗଡ଼ ଅଧିକାର କରିବା ଦୂରର କଥା, ମୋଗଲ ସୈନ୍ୟମାନେ ଚିତ୍ତୋରଗଡ଼ର ଫାଟକ ମଧ୍ୟ ଭାଙ୍ଗି ପାରିଲେ ନାହିଁ । ବୀର ରାଜପୁତମାନେ ନିଜ ମାତୃଭୂମିକୁ ରକ୍ଷା କରିବା ପାଇଁ ପ୍ରାଣମୂର୍ଚ୍ଛା ଲଢ଼ିଲେ । ଦେଶ ମାତୃକା ନିକଟରେ ସେମାନେ ଜୀବନକୁ ତୁଚ୍ଛ ମଣିଲେ । ଧନୁ ତୀର ବିଛେଇ ହୋଇପଡ଼ିଲା । ଆଖିବୁଜା ତୀରମାଡ଼ରେ ମୋଗଲ

ସୈନ୍ୟମାନେ ଗଡ଼ର ଫାଟକ ପାଖରେ ରହିପାରିଲେ ନାହିଁ । ମୋଗଲମାନେ ଖୁବ୍ ଜିଦ୍ ଧରି ଆକ୍ରମଣ ଚଳାଇ ରଖିଥାନ୍ତି । ତେଣେ ରାଜପୁତମାନେ ଖୁବ୍ ଦୃଢ଼ତା ସହ ତାଙ୍କର ମୁକାବିଲା କରୁଥାନ୍ତି ।



ଯୁଦ୍ଧ ଲାଗି ରହିଥାଏ । ରାଜପୁତମାନେ ହଜାର ହଜାର ସଂଖ୍ୟାରେ ସୈନ୍ୟବାହିନୀରେ ଭର୍ତ୍ତି ହେଲେ । ବୀର ପ୍ରତାପ ମଧ୍ୟ ସୈନ୍ୟରେ ଭର୍ତ୍ତି ହେବାକୁ ପ୍ରାର୍ଥୀ ହେଲା । କିନ୍ତୁ ଦୁଃଖର କଥା ସେ ଯୁଦ୍ଧ ଶିକ୍ଷା କରି ନଥିବାରୁ ତାକୁ ସୈନ୍ୟରେ ନିଆଗଲା ନାହିଁ ।

ବୀର ପ୍ରତାପ ମନ ଦୁଃଖରେ ସିନା ଫେରି ଆସିଲା କିନ୍ତୁ, ମନ ତାର ଜନ୍ମଭୂମିକୁ ରକ୍ଷା କରିବାକୁ ବିକଳ ହେଉଥିଲା । ହଠାତ୍ ତା' ମୁଣ୍ଡରେ ଗୋଟାଏ ବୁଦ୍ଧି ଯୁଟିଲା । ସେ ନିଜର ସୀତାରକୁ ଧରି ମଧୁର କଣ୍ଠରେ ଦେଶପ୍ରେମ ଓ ଜାଗରଣ ସଙ୍ଗୀତ ଗାଇ ଗାଇ ସେହି ଯୁଦ୍ଧ କ୍ଷେତ୍ରରେ ପହଞ୍ଚିଲା । ଅପୂର୍ବ ରୋମାଞ୍ଚକର ଜାଗରଣ ସଙ୍ଗୀତ ଶୁଣି ବୀର ରାଜପୁତମାନଙ୍କର ରକ୍ତ ଟକ୍‌ମକ୍ ହୋଇ ଫୁଟି

ଉଠିଲା । ସେମାନେ ପୂର୍ବାପେକ୍ଷା ଅଧିକ ସାହସ ଓ ଉତ୍ସାହ ନେଇ ମୋଗଲ ସୈନ୍ୟମାନଙ୍କୁ ଆକ୍ରମଣ କରି ହଟାଇ ଦେଲେ ।



ପ୍ରବଳ ପରାକ୍ରମୀ ବିଶାଳ ମୋଗଲ ସୈନ୍ୟ ପୁଣି ଅଳ୍ପ କେତେଟା ରାଜପୁତଙ୍କ ଦ୍ୱାରା ପରାଜୟ ବରଣ କଲେ । ଏହା ବଡ଼ ଲଜ୍ଜାର କଥା ଥିଲା । ଏଭଳି କିପରି ସମ୍ଭବ ହେଲା ? ଗୁପ୍ତଚର ଦ୍ୱାରା ସମ୍ବାଦ ଗ୍ରହଣ କରାଗଲା ।

ଗୁପ୍ତଚର ସମ୍ବାଦ ଦେଲେ ଯେ, ଏ ଯୁଦ୍ଧରେ ମୋଗଲ ହାରିବାର କାରଣ ହେଲା—ପ୍ରତାପ । ସେ ତାର ମନ୍ତ୍ରବତ୍ ସଙ୍ଗୀତ ଗାନ କରି ରାଜପୁତମାନଙ୍କ ହୃଦୟରେ ଅମାପ ବଳ ଆଣି ଦେଇଥିଲା ।

ଦିଲ୍ଲୀର ମୋଗଲ ବାଦଶାହ ଆଦେଶ ଦେଲେ, "ବୀର ପ୍ରତାପକୁ କଳେ ବଳେ କୌଶଳେ ଧରି ଆଣ ।"

ବାଦଶାହଙ୍କ ଆଦେଶ ପାଳନ ହେଲା । ବୀର ପ୍ରତାପକୁ ମୋଗଲ ସୈନ୍ୟ ଧରିନେଲେ । ତାକୁ ଜବରଦସ୍ତ କରାଗଲା ଯେ, ଫାଟକ ପାଖରେ ତୁ ଆମ ସପକ୍ଷରେ

ସଙ୍ଗୀତ ଗାନ କରିବୁ । ତତା ସଙ୍ଗୀତ ଶୁଣିଲେ ଚିତ୍ତୋର-ଗଡ଼ର ଫାଟକ ସେମାନେ ଖୋଲିଦେବେ ।



ଯୁଦ୍ଧ ଚାଲିଥାଏ । ବୀର ପ୍ରତାପ ମଧୁର କଣ୍ଠରେ ସଙ୍ଗୀତ ପରିବେଷଣ କରୁଥାଏ । ମୋଗଲମାନେ ମନେ ମନେ ଆନନ୍ଦ ହେଉଥାନ୍ତି । ପ୍ରତାପର ସେ ସଙ୍ଗୀତର ଅର୍ଥ ଥିଲା ଅଲଗା । ଯେଉଁ ସଙ୍ଗୀତ ଶୁଣି ଫାଟକର ଅନ୍ୟପଟେ ଥିବା ରାଜପୁତମାନେ ଜାଗ୍ରତ ହୋଇଗଲେ । ସେମାନେ ପଥର ଆଉ ତୀର ବୃଷ୍ଟି କରି ମୋଗଲମାନଙ୍କୁ ମାରି ପକାଇଲେ ।

ମୋଗଲ ସେନାପତି ଏଭଳି ପରିସ୍ଥିତି ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ସେ ଯୁବକକୁ ପଚାରିଲେ— "ତୁମେ କି' ଗୀତ ଗାଇଲ କି ବାଳକ ?"

ବୀର ବାଳକ ପ୍ରତାପ ହସି ହସି କହିଲା—'ମୁଁ ଗୀତରେ ବୀର ରାଜପୁତମାନଙ୍କୁ କହି ଦେଇଛି—ତୁମେ ସାବଧାନ ହୁଅ, ଶତ୍ରୁମାନେ ଫାଟକ ପାଖରେ ଦଣ୍ଡାୟମାନ । ତୀର ଆଉ ପଥର ମାରି ପକାଅ ।

ବାଳକଟିର ଏଭଳି ସ୍ପଷ୍ଟ କଥାରେ ସେନାପତିଙ୍କ ରକ୍ତ ଗରମ ହୋଇଗଲା । ସେ ପ୍ରଚଣ୍ଡ ରାଗରେ ବୀର ପ୍ରତାପର ମୁଣ୍ଡଗଣ୍ଡି ଅଲଗା କରିଦେଲେ । ମୋଗଲମାନେ ଚିତୋରର ଆଶା ଛାଡ଼ି ଚାଲିଗଲେ ।

ତା'ପର ଦିନ ଚିତୋରର ସୈନ୍ୟମାନେ ଫାଟକ ପାଖରେ ବୀର ପ୍ରତାପର ଶବକୁ ଦେଖି ଆଣିଲେ । ଦେଶ ପାଇଁ ପ୍ରାଣବଳୀ ଦେଇଥିବା ପ୍ରତାପର ଶବକୁ ନିଜେ ଚିତୋରର ରାଣୀ ଚିତାଗ୍ନି ଦେଇଥିଲେ । ଚିତୋରବାସୀ ବୀର ପ୍ରତାପର ଦେଶପ୍ରେମକୁ କେବେ ଭୁଲି ପାରିବେ ନାହିଁ ।



ପ୍ରତାପ ପରି ବୀର ଶହୀଦଙ୍କର ରକ୍ତରେ ଏହି ଭାରତମାତା ଗୌରବାନ୍ୱିତ ହୋଇଛି । ତାଙ୍କର ଦାୟାଦ ଆମେ ସବୁ ଭାରତୀୟ । ଦେଶ ପାଇଁ ପ୍ରାଣ ଦେବାକୁ ପଛେଇବା ନାହିଁ ।

ଜୟହିନ୍ଦ୍

